# ହଜିଯାଉଥିବା ଆମ ଘର କଥା



ଡକ୍ଟର କୃତ୍ତିବାସ ନାୟକ

ହଜି ଯାଉଥିବା

# ଆମ ଘରକରଣା



ଡକ୍ଟର କୃତ୍ତିବାସ ନାୟକ





Haji jauthiba

# Aama Gharakarana


Author :

***Dr. Kruttibas Nayak***

***(National Award Winner Writer)***






***Publisher :***

Arun Tarun

Children's Literature Dev. Society

(Regd. No. K-2627. 66/96-97)

VIM-55, Sailashree Vihar, Bhubaneswar-21

Mob.: 9937743508

ISBN-978-93-87968-28-8

1st Edition - **December, 2015**

Price : **₹ 60**






## ସୂଚିପତ୍ର

## ଓଡ଼ିଆ ଚଳଣି – ଓଡ଼ିଆ ଖାଦ୍ୟ









Source: Author, Digitized by PPRACHIN, SOA



# କୁଲା

ଶୁଭ ଅଶୁଭରେ ଲୋଡ଼ାହୁଏ ମୁହିଁ ହଳଦୀ ଲାଗିଲେ ହସେ,
ବାଉଁଶ ପାତିଆ ଶରୀର ମୋହର ହାତୀକାନ ପରି ଦିଶେ ।

ଧାନରୁ ଅଗାଡ଼ି ଅଲଗା କରେ ମୁଁ ଖଳାରେ ଉଡ଼ାଏ ଧୂଳି,
ଚାଉଳରୁ କୁଣ୍ଡା ପାଛୁଡ଼ି ପକାଏ ଖୁଦକୁ ଅଲଗା କରି ।

ବାହାଘର ବେଳେ ପୂଜା ଫୁଲ ପୁଣି ନୂଆ ଲୁଗା ଧରି ବସେ,
ଗାମୁଛା ନଡ଼ିଆ ପାନପତ୍ର ଧରି ବାରିକ ବେଦୀକୁ ଆସେ ।

ଢିଙ୍କିଶାଳ ଥିଲା ମୋର ବାସସ୍ଥାନ ଏବେ ମୁଁ କାନ୍ଥରେ ଝୁଲେ,
ପିଠିକୁ ଦେଖାଇ ଶୋଇପଡ଼େ କେବେ ଗୁଣିଆ ଡାକରେ ଚାଲେ ।

ଘରର ଘରଣୀ ପାଇଁ ମୁହିଁ ଲକ୍ଷ୍ମୀ ଶୁଖାଏ ଖରାରେ ମଞ୍ଜି,
କିଏ ପୁଣି ବାଛେ ଧାନ ଗୋଡ଼ି ପୋକ ଆଖିରେ ଚଷମା ଖଞ୍ଜି ।

ମୋର ଛୋଟରୂପ କୁଲେଇକୁ ନେଇ ପିଲାଏ ଖେଳନ୍ତି କେତେ,
ଦାଣ୍ଡରୁ ଗୋଟେଇ ବାଲି ପାଛୁଡ଼ିଲେ ଭାରି ଖୁସି ଲାଗେ ମୋତେ ।

ଭାଙ୍ଗିଗଲେ ମୁହିଁ ପୁରୁଣା ହୋଇଲେ ଅଳିଆକୁ ଯାଏ ଚାଲି,
ମଶାଣିରେ ପଡ଼ି ଭାବୁଥାଏ ଏବେ ଅଲୋଡ଼ା ମୁଁ ହୋଇଗଲି ।

ꕥ ꕥ ꕥ



# ଝାଡ଼ୁ

ନଡ଼ିଆ କଞ୍ଚିର ଖଡ଼ିକାରେ ପୁଣି ଫୁଲଝାଡ଼ୁ ଗଛ ଡାଳେ,
ବଜ୍ରମୂଳି ତାଙ୍କ ଗୋଛାଏ ବାନ୍ଧିଲେ ସଫେଇ କାମରେ ଚାଲେ ।

ଦାଣ୍ଡରେ ଘାଟରେ ହାଟରେ ବାଟରେ ମନ୍ଦିର ଦୁଆରେ ଥାଏ,
ଘର କୋଣେ ବସି ମଇଳାକୁ ଦେଖି ରାଗ ଜରଜର ହୁଏ ।

ସୁନା ଖଡ଼ିକାରେ ଗଜପତି ରାଜା ପହଁରା ଦିଅନ୍ତି ଆସି,
ରଥ ଗଡ଼ିଚାଲେ ସଫା ବଡ଼ଦାଣ୍ଡେ ସଭିଏଁ ହୁଅନ୍ତି ଖୁସି ।

ପାଇଖାନାଠାରୁ ନନ୍ଦିଘୋଷ ରଥ ସବୁଠି ମୋ ବାସ ସ୍ଥାନ,
ସେବାରେ ମୁଁ ସଦା ବ୍ରତୀଥାଏ ବୋଲି ପାଏ ଉଚ୍ଚ ସନମାନ ।

ଅଳିଆ ହଟାଇ ସ୍ୱଚ୍ଛକରେ ଜାଗା ଦୋଷୀକୁ ପାହାରେ ଦିଏ,
ମୋଠାରୁ ପାହାର ଖାଇବା ଲୋକଟି ଅପମାନ ପାଇଯାଏ ।

ବେଣ୍ଟରେ ମୋହର ବନ୍ଧାହୁଏ ରଶି କସି ପିଟାହୁଏ କୀଳା,
ଯେତେ କାମ କଲେ ଥକି ଯିବିନାହିଁ ହୋଇବି ନାହିଁ ଢୁଗୁଳା ।

ଖଡ଼ିକାରେ ସିନା ଦାଣ୍ଡ ଖରକିବ ଲାଗିଥିଲେ ଲମ୍ବା ବାଡ଼ି,
ଫୁଲଝାଡ଼ୁ ଧରି ଘର ଖରକିବ ଘର ଜିନିଷକୁ ଝାଡ଼ି ।

ମୋ ହାତ ବାଜିଲେ ବୁଡିଆଣୀ ବସା ଭାଙ୍ଗିଯାଏ ବଳେ ବଳେ,
ସବୁଠି ମୋହର ରହିଛି ଆଦର ରହିଥିବ କାଳେ କାଳେ ।

ଜନମଠାରୁ ମୁଁ ତୁମ ପାଶେ ଥାଏ ମରିଲେ ବି ସାଥେ ଯାଏ,
ମଶାଣିରେ ପଡ଼ି ତୁମଘର କଥା ସ୍ୱଚ୍ଛକଥା ଭାବୁଥାଏ ।





# ପଖିଆ

ଚାଷୀ ମୂଲିଆର ସାଥୀ ମୁଁ ମୋର ନାମ ପଖିଆ,
ଖରା ବରଷାରେ ସାହା ମୁଁ ରୂପ ଏକ ଫାଳିଆ ।

ତାଳ ପତରରେ ଗଢ଼ା ମୋ ଲମ୍ବା ଡେଙ୍ଗା ଶରୀର,
ଚାଷୀର ଦେହକୁ ଲାଗେନା ଥଣ୍ଡା ଶୀତ କାକର ।

ଘୋଡ଼େଇ ରଖେ ମୁଁ ଚାଷୀର ପାଦଠାରୁ ମଥାକୁ,
ମଥାରେ ଝୁଲିକି ଥାଏ ମୁଁ ଲାଞ୍ଜ ଥାଏ ତଳକୁ ।

ଗରିବର ଦେଶୀ ଛତା ମୁଁ ହାଟ ବଜାରେ ମିଳେ,
ଧାନ କଟା ରୁଆ ବେଳରେ ମୁହିଁ ଆଗୁଆ ଚାଲେ ।

ଛତା ଉଡ଼ିଯାଏ ଝଡ଼ରେ ଭାଙ୍ଗିଯାଏ ତା କାଠି,
ପବନ ବରଷା ଭିଜାଏ ଆଗପଛରୁ ଛାଟି ।

ମାଆପରି ରଖେ କୋଳରେ ମୁହିଁ କାନି ଘୋଡ଼େଇ,
ଝଡ଼ କି ବତାସ ପବନ ପାରେନାହିଁ ଉଡ଼େଇ ।









# ଚାଲୁଣୀ

ଚକପରି ଗୋଲ ଥାଳିପରି ଦିଶେ  କୁଲାର ମୁଁ ସାନ ଭଉଣୀ,
ଗୋଡ଼ି ମାଟି ଧୂଳି ମିଶିଥିଲେ ତାକୁ  ଅଲଗା କରେ ମୁଁ ଚାଲୁଣୀ ।

ଧାନ ମୁଗ ବିରି ରାଶି ଶସ୍ୟ ଯେତେ  ରଖିଦେଲେ ମୋର ପେଟରେ,
ହଲେଇ ଝୁଲେଇ ଚଲେଇ ଦେଲେ ମୁଁ  କାଢିଦେବି କଣା ବାଟରେ ।

ମୋ ଦେହରେ ଖାଲି କଣା ମାଳମାଳ  କାରିଗର ଗଢି ଦେଇଛି,
ଫେଣ୍ଟରେ ଭିଡ଼ିଛି ମୋଟା କାଠପଟି  ଧରିବା ସୁବିଧା ହେଇଛି ।

ଚାଉଳରୁ କୁଣ୍ଡା ମୁଗ ବିରି ପୋକ  ବାହାର କରେ ମୁଁ ସହଜେ,
ଛୋଟ ଗୋଡ଼ି ବାଲି ନଥିଲେ ଖାଦ୍ୟରେ  ଭୋଜନ କରିବ ମଉଜେ ।

କାଛରେ ଝୁଲେ ମୁଁ ଦେଖୁଥାଏ ସବୁ  କାହା ଦୋଷ ଅଛି କେଉଁଠି,
କୃଷକର ଘରେ ପାଇଲେ ଆଦର  ଯତନରେ ଥାଏ ସେଇଠି ।









# ମସିଣା

ଖାଲୁଆ ଜାଗାର ନାଳପାଖ ଦେଖି    ବେରୁଆଁ ଘାସକୁ ଆଣି,
କିଏ ଜୁଣ ଘାସ ଖଜୁରି ପତ୍ରରେ    ମସିଣାକୁ ଦିଏ ବୁଣି ।

ବେରୁଆଁରେ ଯଦି ବୁଣାହୁଏ ମୁହିଁ    ମସିଣା ହୁଏ ମୋ ନାମ,
ସପ ବୁଣାଯାଏ ଜୁଣଘାସ ଯୋଡ଼ି    ଚିକ୍କଣ ସୁନ୍ଦର ଟାଣ ।

ଓତପ୍ରୋତ ପୁଣି ଛନ୍ଦାଛନ୍ଦି କରି    ଖଜୁରିପତ୍ରକୁ ଯୋଡ଼ି,
ଚଟେଇ ବୁଣିଲେ ଅତିଥିଙ୍କ ପାଇଁ    ଖୋଲିଯାଏ ଗଡ଼ିଗଡ଼ି ।

ବେରୁଆଁ ତିଆରି ବଡ଼ ମସିଣାକୁ    ହେଁସ ଲୋକେ କହୁଛନ୍ତି,
ଧାନ ମୁଗ ବିରି ଶୁଖେ ମୋ ଉପରେ    ଘୋଡ଼େଇ ହେଇ ଶୁଅନ୍ତି ।

ଗାଆଁର ଗରିବ ଶରଧାରେ ମୋତେ    କହନ୍ତି ବିଲ କମଳ,
ଗୁଡ଼େଇ ଯତନେ ଝୁଲେଇ ରଖନ୍ତି    ବିଛଣା ଲାଗେ କୋମଳ ।

ବାହାଘରବେଳେ ମୋତେ ଖୋଜାପଡ଼େ    ବର କନିଆଁ ବସିବେ,
ଭୋଜିଭାତ ବେଳେ ଧାଡ଼ିହୋଇ ପଡ଼େ    ଅତିଥି ଆସି ଖାଇବେ ।





# ସିକା



ବିଲେଇକୁ ଡରି ଦୁଧ ଦହିହାଣ୍ଡି
ବାଣିରେ ତିଆରି ସିକାରେ ଝୁଲାଇ
ଶୁଖୁଆକୁ ଲୁଚାଯାଏ,
ଚାଳରେ ଓହଳା ହୁଏ ।

ସେଇ ସିକା ମୁହିଁ କାରିଗର ଗଢେ
ବାଇ ଚଢେଇର ବସାପରି ଦିଶେ
ରଶି ଦଉଡ଼ିକୁ ବଳି,
ହାଣ୍ଡିଶାଳେ ରହେ ଝୁଲି ।

ବିଲେଇ ଭାଗ୍ୟକୁ ଛିଡ଼ିଗଲେ ମୁହିଁ
ଘର ଘରଣୀକୁ ଲୁଚେଇ ବିଲେଇ
ଦହିହାଣ୍ଡି ଭାଙ୍ଗିଯାଏ,
ସର ଲବଣୀକୁ ଖାଏ ।

ଝିଅ ବାହାଘର ବାଡୁଅ ପାଣିକୁ
ଫଳଭାର ଗଛ ସହି ନ ପାରିଲେ
ରଖେ କେ ଯତ୍ନ କରି,
ସମ୍ଭାଳେ ମୁଁ ଟେକିଧରି ।

କେହି ବାନ୍ଧିରଖେ ପାଣି କଖାରୁକୁ
ପଖାଳ କଂସାକୁ ନିଏ ମୁଁ ବିଲକୁ
ନଡ଼ିଆକୁ ଟାଙ୍ଗେ ନେଇ,
ଚାଷୀର ଆହାର ପାଇଁ ।





# ହେମଦସ୍ତା

ହେମଦସ୍ତା ନାମ କିଏ ଦେଲା ମୋର ଜାଣିନାହିଁ ଶୁଣିନାହିଁ,
ଢିଙ୍କିପରି ସିନା କାମକରେ ପୁଣି ଅନ୍ୟକାମ ପାରେ ମୁହିଁ ।

ହଳଦୀ ଲଙ୍କାକୁ ଗୁଣ୍ଡ କରିଥାଏ ଯାହାକୁ ଢିଙ୍କି ନପାରେ,
ଅଦା ରସୁଣକୁ ଛେଚିଦିଏ ପୁଣି ଠଣ ଠଣ ଶବଦରେ ।

ବଡୁରା ଚାଉଳ ଗୁଣ୍ଡ ରଖିଦିଏ ମଣ୍ଡାପିଠା ହେବାପାଇଁ,
ଲୁହାରେ ତିଆରି ଦିଶେ ମଗପରି ବଡ଼ ଓଜନିଆ ହୋଇ ।

ଦୁମଦୁମକରି କୁଟେ ଲୁହାବାଡ଼ି କୁଟୁଣୀ ହାତରେ ଧରି,
ଥକିଗଲେ ସିଏ ହାତ ବଦଳାଏ ଓଲଟ ପାଲଟ କରି ।

ଖସିଯିବ କାଳେ କୁଟୁଣୀର ହାତ ବାଡ଼ିରେ ରହିଛି ଛତି,
ଲୁହା କାରିଗର କେଡ଼େ ଯତନରେ ଟାଣ କରିଛ ମୋ ଛାତି ।









# ଖିଲିକାତି

କାତିନୁହେଁ ମୁହିଁ ଓଡ଼ିଆ ଘରର ଗୁଆକଟା ଖିଲିକାତି,
ଲୁହାରେ ତିଆରି ଦେହଟି ମୋହର ଦିଶେ କେତେ ଜାତିଜାତି ।

ରସିକ ଲୋକର ପାନ ବଟୁଆରେ ଥାଏ ଜାକିଜୁକି ହୋଇ,
ପାନ ଭଙ୍ଗାହେଲେ ମୋତେ ଖୋଜାପଡ଼େ ଗୁଆକୁ କାଟିବା ପାଇଁ ।

ପାନ ଦୋକାନୀର ପାଶେ ପାଶେ ଥାଏ ନାଚିନାଚି କାଟେ ଗୁଆ,
ଗୋଟିଏ ପାଟିର ଧାରୁଆ ଦାନ୍ତ ମୋ ଆଉ ଗୋଟିଏ ପାକୁଆ ।

ବାହାବେଳେ ବର ମୋତେ ନିଏ ସାଥେ ନଡ଼ିଆ ଚାଉଳ ଧରି,
ଅସ୍ତ୍ରର ପ୍ରତୀକ ଖିଲିକାତି ମୁହିଁ ବଢାଏ ବରର ଶିରି ।

ମେସିନରେ ଏବେ କଟାହୁଏ ଗୁଆ ତଥାପି ପାଏ ଆଦର,
ଓଡ଼ିଆ ଘରର ପାନଖିଆ ସଙ୍ଗେ ରହିଛି ମୋର ବେଭାର ।







# ଉହ୍ମେଇଁ

ଶୀତଦିନେ ମୋର ବହୁତ ଆଦର ରହିଥିଲା ଆଗକାଳେ,
ସାରାରାତି ଜଳି ଗରମ ଯୋଗାଇ ଦେଉଥିଲି ଥଣ୍ଡାବେଳେ ।

ସେକି ଦେଉଥିଲି ନବଜାତ ଶିଶୁ ମନରେ ଆନନ୍ଦ ଭରି,
ଉହ୍ମେଇଁ ମୋ ନାମ ନିଆଁଧରା କାମ ଦିଶେ ମୁଁ କଡ଼େଇ ପରି ।

ମାଟିରେ ଗଢିଛି କୁମ୍ଭାର ଭାଇ ମୋ ଧରିବାକୁ ଅଛି ବେଣ୍ଟ,
କଣା କରିଛି ସେ ପବନ ପଶିଲେ ନିଆଁରେ ଭରେ ମୋ ପେଟ ।

ଖଳାରେ ବିଲରେ ଗରିବ ଚାଳିରେ ଖଟିଆ ତଳେ ମୁଁ ଥାଏ,
ଦିକିଦିକି ଜଳି ଉଷୁମ ଛାଡ଼େ ମୁଁ କାଠ ତୁଷ ବୋଡି ଖାଏ ।

ହିଟର ଆସିଲା ଏସି ଲାଗିଗଲା ମୋତେ ପାଇବନି ଖୋଜି,
ନପାଇ ଆଦର ହୋଇଗଲି ଦୂର ମୋ ନାମ ଯାଇଛି ହଜି ।







# ଶଙ୍ଖ

ଓଡ଼ିଆ ଜାତିର ଆରାଧ୍ୟ ଦେବତା ଧରିଛନ୍ତି ଶଙ୍ଖ ଚକ୍ର,
ଶ୍ରୀକୃଷ୍ଣଙ୍କ ପ୍ରିୟ ପାଞ୍ଚଜନ୍ୟ ଶଙ୍ଖ ମୁହଁଟି ଦକ୍ଷିଣାବର୍ତ୍ତ ।

ସାଗରରୁ ଲକ୍ଷ୍ମୀ ଚନ୍ଦ୍ର ଜନ୍ମନେଲେ ମୁହିଁ ବି ସାଗର ସୁତ,
ତେଣୁ ସିନା ବିଷ୍ଣୁ ନାରାୟଣଙ୍କର ସବୁଠାରୁ ପ୍ରିୟପାତ୍ର ।

ମୋର ଧ୍ୱନି ଶୁଭେ ସବୁ ଶୁଭ କାର୍ଯ୍ୟେ ସଚେତନ କରେ ମୁହିଁ,
ମୋ ଦେହରୁ ପୁଣି ଗଢାହୁଏ ଶଙ୍ଖା ଅହ୍ୟନାରୀ ହାତ ପାଇଁ ।

ଯେତେଦୂର ଯାଏ ଓଁକାର ଶବଦ ଶୁଭୁଥାଏ ମୋର ଧ୍ୱନି,
ସେତେଦୂର ଯାଏ ଦୁଃଖ ପାପ ଭୟ ରହେନାହିଁ ରହିବନି ।

ନିତି ଯିଏ ମୋତେ ଫୁଙ୍କେ ଶରଧାରେ ଲକ୍ଷ୍ମୀ ବାସ ତା'ର ଘରେ,
ଜଳଦାନ କାର୍ଯ୍ୟେ ଲାଗିଥାଏ ପୁଣି ଜୀବାଣୁକୁ ନାଶକରେ ।







# କଉଡ଼ି

ସାଗର କୋଳରେ ଜନମ ମୋହର    ଦେଖିବାକୁ ଛୋଟ ବଡ଼,
ଧଳା ଫରଫର ଶଙ୍ଖର ଭାଇ ମୁଁ    ମଳା କଉଡ଼ିର ହାଡ଼ ।

ବହୁତ ଆଦର ପାଉଥିଲି ଦିନେ    ଟଙ୍କା ପଇସା ନଥିଲା,
କଉଡ଼ି ବଳରେ ମହାଜନ ଦିନେ    ପରିଚିତ ହେଉଥିଲା ।

ନବ ଜାତକର ଛଅଦିନେ ହୁଏ    କଉଡ଼ିର ଷଠିଘର,
ଷଠିବୁଷୀ ମାଆ ସେଇଘରେ ବସି    ଦିଏ କପାଳରେ ଗାର ।

ମାଣବସା ଲକ୍ଷ୍ମୀ ଠାକୁରାଣୀ ଆଖି    ହୋଇରହେ ଘରେ ଘରେ,
ଆଉ କିଏ ମୋତେ ଅତି ଆଦରରେ    ଗୁନ୍ଥି ଗଳାମାଳି କରେ ।

ବାହାଘର ପରେ ବରକନ୍ୟା ଦୁହେଁ    ଖେଳନ୍ତି ମୁଠେଇ ଧରି,
ହସଖୁସି ଖେଳ ମଜାରେ ମଜାରେ    ବାହାଘର ଯାଏ ସରି ।

ଜୀବନ ଖେଳର ଶେଷ ପ୍ରହରରେ    ମୋତେ ଖୋଜାପଡ଼େ ପୁଣି,
କୋକେଇରେ ଶବ ଯାଏ ମଶାଣିକୁ    ଖଇ କଉଡ଼ିକୁ ବୁଣି ।

ଖଇ ସିନା ଖାଦ୍ୟ ମୁହିଁ ହେଲି ଧନ    ଦୁହିଁଙ୍କୁ ପକାଇ ଦେଇ,
ଦେହ ଛାଡ଼ି ଆତ୍ମା ଚାଲିଯାଏ ଦୂରେ    ଏସବୁ ଅଲୋଡ଼ା କହି ।

ଆଜି ସିନା ଟଙ୍କା ପଇସା ଆସିଲା    କମିଛି ଆଦର ମୋର,
ଜନମଠାରୁ ମୁଁ ମରଣ ପର୍ଯ୍ୟନ୍ତ    ଲୋଡ଼ା ହୁଏ ମଣିଷର ।







# ଢିଙ୍କି



ମୋ ନାଆଁକୁ ନେଇ କେତେକଥା ଅଛି    ଆଜି ମୁଁ ପଡ଼ିଛି ଶୋଇ,
ଢିଙ୍କିଶାଳଠାରୁ ଢେଙ୍କାନାଳ ଯାଏ    କଥାଟି ଯାଇଛି ରହି ।

ଢିଙ୍କିଆ କୁମ୍ଭୀର ମୋ ନାମରେ ଅଛି    ଢିଙ୍କିଶାଳ ମୋର ଘର,
ଶରୀରଟି ଲମ୍ବା ମୋଟା ଦିଶେ ସିନା    ମୁହଁଟି ସରୁ ସୁନ୍ଦର ।

ଗୃହଲକ୍ଷ୍ମୀ ମୁହିଁ ଅନ୍ନଦାତ୍ରୀ ନାମେ    ଘରେ ଘରେ ପୂଜା ପାଏ,
ସବୁ ଶୁଭକାର୍ଯ୍ୟେ ମୋତେ ଖୋଜାପଡ଼େ    ଆଗ ମୁଁ ମଙ୍ଗୁଳା ହୁଏ ।

ଦୁଇଟି ଗୋଡ଼ରେ ଠିଆ ହୋଇଥାଏ    ଦୁଇଟି ଡେଣାରେ ଉଡ଼େ,
ଦୁମ ଦୁମ ଦୁମ ଶବଦ କରେ ମୁଁ    କେଁ କେଁ ରଡ଼ି ଛାଡ଼େ ।

ଲାଞ୍ଜରେ ମୋହର ପାଦ ଥୋଇଦେଲେ    ଉପରକୁ ଉଠେ ମୁହିଁ,
ମୁହଁକୁ ହଲେଇ ଶମା କୁଟେ ଧାନ    ଆଖି କାନ ମୋର ନାହିଁ ।

କାଠରେ ଗଢା ମୁଁ ପଥରରେ ନାଚେ    ମୁହଁରେ ଲାଗିଛି ଲୁହା,
ଧାନକଳ ଏବେ ମୋ କାମ କରୁଛି    ସଙ୍ଗାରେ ହୋଇଛି ଥୁଆ ।





# ଓଳିଆ

ପାଳ କୁଟା ଧାନ ଛଣରେ ତିଆରି ପେଟୁଆ ଦେହଟି ମୋର,
ମୋ ପେଟରେ ଧାନ ସୁରକ୍ଷିତ ରହେ ମୂଷାକୁ ନଥାଏ ଡର ।

ପାଳ ଯୋଡ଼ିଯୋଡ଼ି ବେଣୀପରି ବଳି ଦଉଡ଼ିଟି କରାଯାଏ,
ଚାଷୀର ଅମାର ବିହନ ଘର ମୁଁ ଯତନରେ ଗଡାହୁଏ ।

ଛଣକୁ ସଜେଇ ଦଉଡ଼ି ଗୁଡ଼େଇ ହାଣ୍ଡିପରି ଆଗ ଗଢେ,
ଧାନ ରଖିରଖି ବଢାଏ ଶରୀର ଶେଷରେ ମୋ ମୁଣ୍ଡିମାରେ ।

ପିଟିପିଟି ମୋତେ ଟାଣ କରାଯାଏ ଖୋଲିବନି ଫିଟିବନି,
ମୋ ଟାଣ ଦେହରେ କୀଟ କି ପତଙ୍ଗ ସହଜରେ ପଶିବନି ।

ଗଡ଼ିଲେ ଖୋଲେନା ପଡ଼ିଲେ ଭାଙ୍ଗେନା ନଥାଏ ଦୁଆର ମୋର,
ଚାଷୀ କାଢେ ଧାନ ଅତି ଯତନରେ ଯେତେବେଳେ ଦରକାର ।

ଓଳିଆରୁ ଗଜା ହୁଏନାହିଁ ଧାନ ଏକଥା ସଭିଙ୍କୁ ଜଣା,
ସେଇଥିପାଇଁ ତ ମୋ ନାମକୁ ଧରି ମିଛରେ କରନ୍ତି ବଣା ।

ଯୁଗ ବଦଳିଲା ଅଖା ବସ୍ତା ହେଲା କେତେ ରକମର ଡବା,
ତଥାପି ମୋହର ରହିଛି ଆଦର କୃଷକ ଘରର ଶୋଭା ।









# ଶିଳ

ପଥରରେ ଗଢା ଶରୀର ମୋହର ଶୋଇଥାଏ ଦିନରାତି,
ମୋ କୋଳରେ ଥାଇ ଶିଳପୁଆ ଘଷି ଚାଉଳକୁ ଦିଏ ବାଟି ।

ବଡ଼ି ହେବାପାଇଁ ବିରି ବାଟିଦିଏ ଚିକ୍କଣ ଚାକ୍କଣ କରି,
ମସଲାକୁ ବାଟେ ରସୁଣକୁ ଛେଚେ ହେବ ବୋଲି ତରକାରୀ ।

ହଳଦି ବାଟିଲେ ମାଖିହେବେ ଛୁଆ ସେଥିରେ ଶରଧା ମୋର,
ଲଙ୍କା ବାଟିଥିଲେ ଧୋଇଦିଅ ମୋତେ ପୋଡ଼ିବ କାଳେ ଶରୀର ।

ବାହାଘର ବେଳେ କୋଟିଏ ଆଦର ମଙ୍ଗୁଳା ହୁଏ ମୁଁ ଆଗ,
ଦୁବ ବରକୋଳି ପତର ସହିତ ସିନ୍ଦୂର ଚନ୍ଦନ ଥିବ ।

ଝିଅ ମଙ୍ଗୁଳାରେ ମୋର ଶିଳପୁଆ ସାତଥର ଛେଚିଥାଏ,
ଯଉତୁକ କିଛି ନେଉ ବା ନ ନେଉ ମୁହିଁ ତା' ସାଥୀରେ ଯାଏ ।

ରଜ ପରବରେ ସାବିତ୍ରୀ ବ୍ରତରେ ଶିଳପୁଆ ପାଏ ପୂଜା,
ଏବେ ତ ମେସିନ ମୋର କାମ କରେ କେବେ କେବେ ପଡ଼େ ଖୋଜା ।





# ଡିବିରି



ଏବେ ସିନା ତୁମେ ବିଜୁଳି ଜାଳୁଛ ମୋତେ ତ ଯାଇଛ ଭୁଲି,
ଦିନଥିଲା ମୁହିଁ ଦିକିଦିକି ଜଳି ଆଲୋକ ଦେଖାଉଥିଲି ।

ଜଡ଼ାତେଲ ପରେ ମାଟିତେଲ ପିଇ ଜଳୁଥିଲି ସଳିତାରେ,
ଅନ୍ଧକାର ଚିରି ବାଟକୁ ଦେଖାଇ ନେଉଥିଲି ଆଲୋକରେ ।

ମହମବତୀରେ ସଳିତା ଲାଗିଲା ଲୋକେ ଆଦରିଲେ ତାକୁ,
କାଚ ଲାଗିଗଲା ସୁବିଧା ହୋଇଲା ଲଣ୍ଠଣ ଜାଳିବାକୁ ।

ଧୀରେ ଧୀରେ ପୁଣି ପମ୍ପଲାଇଟ୍ ଜଳିଲା ଆଲୋକ ଦେଇ,
ଗ୍ୟାସ ଲାଇଟ୍ ଆସିଗଲା ପୁଣି ଘରଦ୍ୱାର ଚମକାଇ ।

ବିଜୁଳି ଆଗରେ ହାରିଗଲେ ସବୁ ସିଏ ଝଲମଲ କରେ,
ହାରିନାହିଁ ମୁହିଁ ତଥାପି ରହିଛି ଗରିବ ଲୋକର ଘରେ ।





# ପଲମ

ବୁଡ଼ା ଚକୁଳି ସରୁ ଚକୁଳି ତିଆରି କରେ ମୁହିଁ,
ଚୁଲିରେ ବସେ ମାଟି ପଲମ ମାଟି ଘୋଡ଼ଣୀ ଦେଇ ।

ବିରି ଚାଉଳ ପିଠଉ ଦେଲେ ନରମ ହୁଏ ପିଠା,
ଚକୁଳି ପିଠା ଗଢିଦିଏ ମୁଁ ହେଲେ ଚିକ୍କଣ ବଟା ।

ଉସୁନା ଖୁଦ ପିଠଉ ହେଲେ ବୁଡ଼ା ଚକୁଳି ଗଢେ,
ଅଳପ ନିଆଁ ଥିଲେ ଚୁଲିରେ ବାସନା ତା'ର ବଢେ ।

ଚିତଉ ଅମାବାସ୍ୟାରେ ଗଢେ ସରୁ ଚିତଉ ପିଠା,
ଗେଣ୍ଡା ଶାମୁକା ଖାଇବେ ଆଗ ଲାଗିବ ତାଙ୍କୁ ମିଠା ।

ଚୁଲି ମୁଣ୍ଡରେ ବସିଲେ ପିଲା ଖୋଜନ୍ତି ନିଜ ଭାଗ,
ଆଈ କହନ୍ତି ଅଜା ପାଖକୁ ପଠେଇ ଦିଅ ଆଗ ।

ବିଲେଇନାନୀ ପାଖରେ ବସି ପାଟିକୁ ଥାଏ ଚାହିଁ,
ଆଖିବୁଜିକି କୁକୁର ଶୁଏ ସତେ ଖାଇବ ନାହିଁ ।

ପଲମ ପିଠା ପାଟିକୁ ମିଠା ଦେହକୁ ଉପକାର,
ତାଵା ଆସିଲା ନାନା କିସମ ନାହିଁ ମୋ ଦରକାର ।





# ବିଞ୍ଚଣା

ତାଳ ପତରରେ ଗଢା ମୋ ଶରୀର  କାରିଗର ମୋର ମାଆ,
ଗରମ ବେଳରେ ବିଞ୍ଚିଦିଏ ବୋଲି  ବିଞ୍ଚଣା ମୋହରି ନାଆଁ ।

ଚିରା କାଠି ଖଣ୍ଡେ ବନ୍ଧା ହୋଇଥାଏ  ନଳୀରେ ଥାଇ ସେ ଘୂରେ,
ଶୀତଳ ପବନ ପାଇଲେ ମଣିଷ  ଆରାମରେ ହାଇମାରେ ।

ମଶା ମାଛି ପୋକ ଘଉଡ଼େଇ ଦିଏ  ଚକ୍ରପରି ଘୂରିଘୂରି,
ଗରମଭାତକୁ ଥଣ୍ଡା କରିଦିଏ  ଘୂରୁଥିଲେ ଥିରିଥିରି ।

ହାତପଙ୍ଖା ମୁହିଁ କେତେ ରୂପଧରି  ବୁଲେ ଝୁଲେ ପୁଣି ଚାଲେ,
ଦେବତାଙ୍କ ପାଶେ ରାଜାଙ୍କ ଉଆସେ  ଦାସଦାସୀ ହାତେ ହଲେ ।

କେଡ଼େ ଶରଧାରେ ମଖମଲି କନା  ଉପରେ ଆଙ୍କନ୍ତି ଛବି,
କେତେ ରଙ୍ଗଦେଇ ସଜାନ୍ତି ମୋ ରୂପ  କଳାକାର ଭାବିଭାବି ।

ବିଜୁଳିର ପଙ୍ଖା ଆସିଲେ କି ହେବ  ମୋ ସରି କେ ହେବନାହିଁ,
ରହିଛି ଆଗରୁ ରହିବି ଆଗକୁ  ମଣିଷକୁ ସେବାଦେଇ ।











# ଚକି

ଚକିବୋଲି ମୋତେ ସଭିଏଁ ଜାଣନ୍ତି ରୂପ ମୋର ଚକପରି,
ପେଷିଦିଏ ବୋଲି ପେଷା ନାମ ମୋର ଚୂରିଦିଏ ମୁଗ ବିରି ।

ଶିଳର ଭଉଣୀ ପଞ୍ଚସ୍ୱର୍ଣ୍ଣ ମଧ୍ୟେ ରହିଛି ନାଆଁଟି ମୋର,
ସବୁ ଶୁଭକାର୍ଯ୍ୟେ ମୋତେ ଲୋଡ଼ା ପୁଣି ହୁଏ ମୁଁ ବୋହୂର ଭାର ।

ପଥରରେ କଣା କରେ ପଥୁରିଆ କାଠଦିଏ ଖିଲକରି,
ତଳ ଚକି ପରେ ଉପର ଚକିକୁ ବୁଲାନ୍ତି ହାତରେ ଧରି ।

ଘୋରଣା ନାମରେ ଆଉ କେତେଜଣ ଘୂରାନ୍ତି ମୋହର ଚକି,
ବାହାଘର ମୁଗଜାଇ ମଙ୍ଗୁଳାନ୍ତି ସାତ ଅହ୍ୟନାରୀ ଡାକି ।

ଘରଣୀଙ୍କ ପାଇଁ ଗୃହଲକ୍ଷ୍ମୀ ମୁହିଁ ଘରକୋଣେ ଥାଏ ବସି,
ରାଶି ମୁଗ ବିରି ଚୋପାକୁ ଛଡ଼ାଏ ମୋ ଦେହରେ ଘଷିଘଷି ।

ଗୁଣ୍ଡ କରିଦିଏ ଚାଉଳ ଦେଲେ ମୁଁ ଘରଣୀ କରନ୍ତି ପିଠା,
ମଣିଷ ସେବାରେ ଲାଗିଥାଏ ବୋଲି ଲାଗେନାହିଁ କେବେ ବ୍ୟଥା ।

ବିଜୁଳିରେ ଏବେ ଚାଲିଛି ଘୋରଣା ମୋତେ ବା ପଚାରେ କିଏ ?
ମଣିଷ ତିଆରି ଆଧୁନିକ ଚକି ମୋର କାମ କରିଦିଏ ।





# ଟୋକେଇ

ବାଉଁଶ ପାତିଆ ଖଞ୍ଜି ଧାଡ଼ିଧାଡ଼ି ଗଡାହୁଏ ମୋର ଦେହ,
ତଳରୁ ଉପର ଉପରୁ ତଳକୁ ଛନ୍ଦି ରଖିଥାଏ ରୁଅ ।

ପଞ୍ଜରା ହାଡ଼କୁ ବଡ଼ପେଟ ଖାଲି ହାତ ଗୋଡ଼ ମୋର ନାହିଁ,
ମୋ ମୁଣ୍ଡର ବେଣୀ ଭାରିଟାଣ ଅଛି ଟାଣିଲେ ହଲିବ ନାହିଁ ।

ଗୋବର କାଦୁଅ ଚକଟି ଲେପିଲେ ମୋ ରୂପ ବଦଳି ଯାଏ,
ତା' ଆଗରୁ କିଏ ମୋତେ ଝୁଡ଼ି କହି ଅଳିଆ ପଥର ବୋହେ ।

ମୋ ପେଟରେ ଧାନ ମୁଗ ବିରି କୁଣ୍ଡା ଚାଉଳ ଯତନେ ରହେ,
ଲିପା ପୋଛା ହେଲେ ମୋ ପେଟ ଭିତର ପୁଣି ନୂଆ ହୋଇଥାଏ ।

ବେତରେ ତିଆରି ହୋଇଥିଲେ ପୁଣି ବେତା ହୁଏ ତା'ର ନାଆଁ,
ଡେଙ୍ଗା ମୋଟା ହେଲେ ଘୂମା ନାମଧରି ଘରେ ହୋଇଥାଏ ଠିଆ ।

ମୋ ଆକାର ଦେଖି ରୋଗୀ ବୁହାହୁଏ ଗାଆଁରୁ ଡାକ୍ତରଖାନା,
ସେର ମାଣ ପୁଣି ଗଉଣି ରୂପରେ ମୋର ଛୁଆ ହୁଏ ଗଣା ।

ରହିଛି ରହିବି ଯେତେ ଦିନଯାଏ ଚାଷ ବାସ ଚାଲିଥିବ,
କୃଷକ ମୋ ସାଥୀ ତା' ସେବାରେ ମାତି ଜୀବନ ଧନ୍ୟ ହୋଇବ ।





# ସିନ୍ଦୁକ

ବଡ଼କାଠ ପେଡ଼ି ପରି ଦିଶେ ସିନା
ଅଛି ମୋର ସ୍ୱାଭିମାନ,
କେତେ କାରୁକାର୍ଯ୍ୟ ଶିଳ୍ପୀ କରିଥାନ୍ତି
ଆଙ୍କିଥାନ୍ତି ଚିତ୍ରମାନ ।

ତମ୍ବା ପିତ୍ତଳର କଡ଼ି ଲାଗିଥାଏ
କବଜା ଧାଡ଼ିକି ଧାଡ଼ି,
ମୋ ପେଟରେ ଥାଏ ସୁନା ରୁପା ଟଙ୍କା
ମୂଲ୍ୟବାନ ପାଟଶାଢୀ ।

ନୂଆବୋହୂ ସଙ୍ଗେ ଯାଏ ଶାଶୂଘର
ପାନଗୁଆ ଖିଲିକାତି,
ତା' ସାଙ୍ଗରେ ଥାଏ କେତେ ଗପବହି
ମନୋହରୀ ଜାତିଜାତି ।

ଆକାର ଯେମିତି ରୂପରେ ସେମିତି
କାମରେ ମୁଁ ଧୂରନ୍ଦର,
ଶାଶୂ ବୋହୂଙ୍କର ଗହଣା ଦୋକାନ
ମାଲିକ ଭଣ୍ଡାର ଘର ।

ମୋର ବିନା ଘର ସୁନ୍ଦର ଦିଶେନା
ଘର ଜଗି ବସିଥାଏ,
ଯେତେ ଆସିଛନ୍ତି ଯେତେ ଯାଉଛନ୍ତି
ସଭିଙ୍କର ଲୋଡ଼ାହୁଏ ।

ଆଜିର ଯୁଗରେ ସବୁ ବଦଳିଛି
ଆସିଛି ଚକ ଆଟାଚି,
ଲୁହା ଟିଣ ବାକ୍ସ ପାଉଛି ଆଦର
ଅଲୋଡ଼ା ହେଇ କାନ୍ଦୁଚି ।







# ଚୁଲି

ଲକ୍ଷ୍ମୀଙ୍କର ପ୍ରିୟ ମଣିଷର ପ୍ରିୟ
ଝିଙ୍କା ତିନୋଟି ମୋ ତ୍ରିନାଥ ସମାନ
ଅଗ୍ନି ବାସସ୍ଥାନ ମୁହିଁ,
ଜଳେ ନିତି ପରପାଇଁ ।

ମୋ ଉପରେ ହାଣ୍ଡି ଡେକିଚି କଡ଼େଇ
ବସିଥାନ୍ତି ଅନ୍ନ ଧରି,
ନିଜେ ଜଳିଜଳି ଅନ୍ନ ବ୍ୟଞ୍ଜନକୁ
ରାନ୍ଧେ ମୁଁ ଯତନ କରି ।

ପିଠା ପୋଡ଼ିଦିଏ ମିଠା ଗଢିଦିଏ
ସିଝାଏ ହାଣ୍ଡିର ଧାନ,
ଅଖାଦ୍ୟକୁ ଖାଦ୍ୟ ରୂପ ଦିଏ ବୋଲି
ମିଳେ ମୋତେ ସନମାନ ।

ହାଣ୍ଡିଶାଳ ସିନା ମୋ ପାଇଁ ସୁନ୍ଦର
ଲିପାପୋଛା ହୋଇଥିଲେ,
ମୋତେ ଖୋଜାପଡ଼େ ସବୁଦିନ ପୁଣି
ସବୁ ଶୁଭକର୍ମ ବେଳେ ।

ନୂଆବୋହୂ ଆସି ମୋତେ ପୂଜେ ଆଗ
ମୁହିଁ ତା' ଜୀବନ ସାଥୀ,
ବିଲେଇ ନାନୀର ଅତି ପ୍ରିୟ ଜାଗା
ମୋ କୋଳେ ଲଗାଏ ଛାତି ।

ଚୁଲିମୁଣ୍ଡ ତାତି ସବୁଠୁ ମଧୁର
ଶୀତଦିନ ହେଇଥିଲେ,
ଅଜା ଆଈ ବସି ଗପନ୍ତି ସେଇଠି
ଟିକିଏ ବେଳ ପାଇଲେ ।

ହେଳାକଲେ ମୋତେ ନିଆଁଝୁଲ
ମୋର ଘରଦ୍ୱାର ଜାଳିଦିଏ,
ଅନେକ ରୂପରେ ସାନ ବଡ଼ ହୋଇ
ସେବାରେ ମୁଁ ଲାଗିଥାଏ ।

ଚିଙ୍ଗି ଚକି ଝାଡୁ କଳସୀ ସହିତ
ମୋ ନାମକୁ ଯୋଡ଼େ ଶାସ୍ତ୍ର,
ପଣ୍ଡିତେ ସଭାରେ ପଞ୍ଚସ୍ୱର୍ଣ୍ଣ ନାମେ
ଉଚ୍ଚାରନ୍ତି ତାଙ୍କମନ୍ତ୍ର ।







# ଖୁଆ

କାଠରେ ତିଆରି ଲମ୍ବାବାଡ଼ି ତଳେ ଚକ୍ରପେଣ୍ଡୁ ଲାଗିଥିବ,
ନିଦାପେଣ୍ଡୁ ଘୂରି କାଟିବ ଲହୁଣୀ ଦହି ଚଲ୍ଲା ହୋଇଯିବ ।

ଖୁଆଦଣ୍ଡ ପାଖେ ଦହିହାଣ୍ଡି ରଖି ରସିକୁ ଟାଣେ ଘରଣୀ,
କଳାକାହ୍ନୁ କୃଷ୍ଣ ଲବଣୀ ଖାଇଲେ ମନ୍ଥିଲେ ଯଶୋଦା ରାଣୀ ।

ଘିରିଘିରି ଘୂରେ ମୁହିଁ ସେ ହାଣ୍ଡିରେ ଲବଣୀ ଉପରେ ଭାସେ,
ଧୋବ ଲବଣୀକୁ ଦେଖିଲେ କହ୍ନେଇଁ ମୁରୁକି ମୁରୁକି ହସେ ।

ମୁହିଁ ଖୁଆ ମୋର ପ୍ରିୟ ଖୁଆଦଣ୍ଡ ତା' ସାଥୀରେ ରହିଥାଏ,
ଦହିକୁ ମନ୍ଥି ମୁଁ ଲବଣୀରୁ ଘିଅ ବାହାର କରି ଖୁଆଏ ।

ସରମିଶା ଦହି ମନ୍ଥା ସରିଗଲେ ସେଥିରୁ ମିଳଇ ଚଲ୍ଲା,
ଲୁଣମିଶା ଚଲ୍ଲା ବଡ଼ ସୁଆଦିଆ ସିଝାଇଲେ ଛେନା ହେଲା ।







# ପଗଡ଼ି

ମଧୁବାବୁ ଦିନେ କହିଥିଲେ ଭାଇ
ମୁଣ୍ଡରେ ପଗଡ଼ି ଦିଅ,
ଓଡ଼ିଆ ପଗଡ଼ି ଭିଡ଼ିଦେଇ ଗର୍ବେ
ନିଜକୁ ଓଡ଼ିଆ କୁହ ।

ମୁଣ୍ଡରେ ପଗଡ଼ି ପାଦେ ତେଲ ଦେଲେ
ନିରୋଗ ରହିବ ସିଏ,
ଯେତେକଥା ଯିଏ କହିଲେ କି ହେବ
ତାକୁ ପଚାରୁଛି କିଏ ?

ଚାଷୀ ମୂଲିଆ ହିଁ ଅସଲ ମଣିଷ
ମୁଣ୍ଡରେ ବାନ୍ଧନ୍ତି ଠେକା,
ଖରା ବରଷାରୁ ରକ୍ଷାକରେ ମୁହିଁ
ଲାଗେନି ଶ୍ରମର ଥକ୍କା ।

ଧନୀ ମାନୀ ଥିଲେ ସୁନ୍ଦର କପଡ଼ା
ଗୁଡ଼େଇ ପଗଡ଼ି କରେ,
ଗରିବ ଗାମୁଛା ଅଣ୍ଟାରୁ ବାହାରି
ମଥା ଠେକା ରୂପ ଧରେ ।

ମୋତେ ପିନ୍ଧିଥିଲେ ମୁଣ୍ଡରହେ ଥଣ୍ଡା
ଆଘାତ ଲାଗେନି ଶିରେ,
ଶୀତ କାକରକୁ ନଥାଏ ଖାତର
ମଥାକୁ ମୁଁ ଟେକି ଧରେ ।

ଯୁଦ୍ଧରେ ସୈନିକ ବିଲରେ କୃଷକ
ଗାଡ଼ିରେ ଥିଲେ ଚାଳକ,
ବରବେଶ ବେଳେ ସଭିଏଁ ଲୋଡ଼ନ୍ତି
ପୋଲିସର ମୁଁ ପୋଷାକ ।

କେତେ ରୂପଧରି ଆସିଛି ବାହାରି
କିଏ ମୋତେ ଟୋପି କହେ,
ଶିରସ୍ତ୍ରାଣ ନାମେ ଟାଣୁଆ ପଗଡ଼ି
ବିପଦରେ ସାହା ହୁଏ ।।

ଟୋପି କୁହ କିବା ଠେକା କୁହ ମୋତେ
ମଣିଷ ସେବାରେ ଥାଏ,
ଶିରସ୍ତ୍ରାଣ ପିନ୍ଧି ଗାଡ଼ି ଯେ ଚଳାଏ
ତାକୁ ମୁଁ ବଞ୍ଚେଇ ଦିଏ ।





# ମାଠିଆ

ପୋଖରୀ ତୁଠ ନଈ କୂଳରେ ବୋହୂ କାଖରେ ଥାଏ,
କଳସ ହେଇ ଶୁଭକାର୍ଯ୍ୟରେ ଦୁଆରେ ଶୋଭା ପାଏ ।
ସବୁ ଦେବତା ପୂଜା ପାଆନ୍ତି ମୋ ପୂଜା ଯଦି ହୁଏ,
ଅଗ୍ରପୂଜ୍ୟ ମୁଁ ବିଘ୍ନନାଶକ କଳସ ରୂପେ ଥାଏ ।
ବିବାହ ବେଦୀ ପୂର୍ଣ୍ଣ କଳସ ପ୍ରଜାପତିଙ୍କ ରୂପ,
ଆମ୍ବ ଡାଳୁଆ ପଇଡ଼ ପୁଣି ଥିବ ସିନ୍ଦୂର ଛାପ ।
ମାଟିରେ ଗଢା ଶରୀର ମୋର ଜଳରେ ଭରା ପେଟ,
ଧାତୁରେ ଥିଲେ ସୁନ୍ଦର ଦିଶେ ହେଉ ପଛକେ ଛୋଟ ।
ପିଠଉ ଚିତା ସିନ୍ଦୂର ଦେଇ ମୋତେ ସଜାନ୍ତି ଝିଅ,
ମନକୁ ନେଇ ଫଳ ପାଆନ୍ତି ସଭିଙ୍କର ମୁଁ ପ୍ରିୟ ।
ମୋ ଭାଇ ହାଣ୍ଡି ଆଟିକା ପୁଣି ପଲମ ଧୂପଦାନି,
କୁମ୍ଭାର ଭାଇ ଗଢି ଦେଉଛି ଲୋକଙ୍କ ମନଜାଣି ।
ସେଜ ତୋରାଣୀ ରଖିବା ପାଇଁ ଜାହାଲା ହୁଏ ଗଢା,
ସବୁରି ଘରେ ବାସ ମୋହର ସବୁ କାମରେ ଲୋଡ଼ା ।







# ଶଗଡ଼

ଘିଡ଼ି ଘିଡ଼ି ଘିଡ଼ି ଗଡ଼ିଚାଲେ ମୁହିଁ ନାଆଁ ମୋ ଶଗଡ଼ଗାଡ଼ି,
ବଳଦ ମଇଁଷି ଟାଣିଟାଣି ମୋତେ ଗାଆଁରେ ନିଅନ୍ତି ଭିଡ଼ି ।

କାଠରେ ତିଆରି ସବୁଠାରୁ ବଡ଼ ଦୁଇଟା ଚକରେ ଗଢ଼େ,
ବଡ଼ଦେହ ମୋର କାଠଅଖ ଚକ ବଢେଇ ଯତନେ ଗଢେ ।

ଚକ ତଳେ ଲୁହାପାତ ଲାଗିଥାଏ ଘୋରିଯିବ ନାହିଁ କାଠ,
ସବୁ ଜାଗାକୁ ମୁଁ ଯାଇପାରେ ପୁଣି ହେଉପଛେ ଦୂରବାଟ ।

କଚାରାସ୍ତା ବିଲ ଗାଆଁରେ ଚାଲେ ମୁଁ ବେପାରୀ ଜିନିଷ ବୋହି,
ଶଗଡ଼ିଆ ବସି ବଳଦ ଅଡ଼ାଏ କେତେ ପଲ୍ଲୀଗୀତ ଗାଇ ।

ତଳେ ଝୁଲୁଥାଏ ଲଣ୍ଠନ ବତୀଟା ବଳଦ ବେକରେ ଘଣ୍ଟି,
ଚାଷୀଭାଇ ସାଥେ କାମକରେ ମୁହିଁ ସାରାଦିନ ଖଟିଖଟି ।

ଦିନଥିଲା ମୁହିଁ ଥିଲି ଗାଡ଼ିରଜା ଭରସା ଯାତାୟତର,
ନୂଆବୋହୂ ଯାଉଥିଲା ଶାଶୁଘର ମୋ ପିଠିରେ ରଖି ଭାର ।

କେତେ ଧନୀଲୋକ ସଜାନ୍ତି ମୋ ରୂପ ଦିଶେ ରଜାରଥ ପରି,
ଛୋଟ କୁଡ଼ିଆରେ ବସି ଆରାମରେ ଯାଉଥିଲେ ତୀର୍ଥ ପୁରୀ ।

କେବେ ବା କେଉଁଠି ରହିଛି ମୁଁ ଲୁଚି ଅବେଳରେ ଲୋଡ଼ାହୁଏ,
କେତେ ଗାଡ଼ି ଏବେ ମୋ କାମ କରନ୍ତି ମୋତେ ପଚାରୁଛି କିଏ ?









# ଲଙ୍ଗଳ

କାଠରେ ତିଆରି ଦେହଟି ମୋହର ଲାଗିଛି ଲୁହାର ଫାଳ,
ହଳକରି ମାଟି ହାଲୁକା କରେ ମୁଁ ବିଲରେ ଫଳାଏ ଫଳ ।

ଦ୍ୱାପର ଯୁଗରେ ବଳରାମ ପ୍ରଭୁ କାନ୍ଧରେ ବୋହିଲେ ମୋତେ,
ଜଗତଜନକୁ ଦେଖାଇଦେଲେ ସେ ଲଙ୍ଗଳର ବଳ କେତେ ।

କୃଷକ ସହିତ ଦୁଇଟି ବଳଦ ମୋ ଦୁଃଖ ସୁଖର ସାଥୀ,
ଜୁଆଳି ସହିତ ବନ୍ଧା ହୋଇଥିଲେ ହଳରେ ରହେ ମୁଁ ମାତି ।

ଖରାଦିନେ ସିନା ଚଉଡ଼ା ଫାଳରେ ହଳକରେ ଖୁସି ମନେ,
ବରଷା ଦିନରେ କାଦୁଆ ହଳରେ ସରୁ ଫାଳ ଲାଗେ କାମେ ।

ଚତୁର ମଣିଷ ବଙ୍କା ପାତଦେଇ ଉପାଡ଼େ ଅରମା ଘାସ,
ହଳ ସରିଗଲେ ଆନନ୍ଦ ମନରେ କୃଷକ କରଇ ଚାଷ ।

କେତେବେଳେ ଚାଷୀ କାନ୍ଧରେ ବସେଇ ନେଇଯାଏ ହିଡ଼ଯାଏ,
ଆଉ କେତେବେଳେ ବଳଦ କାନ୍ଧରେ ବୁହାହେଇ ଚାଲିଯାଏ ।

ମଇ ମୋର ସାଥୀ ସମାନ କରାଏ ଗୁଣ୍ଡ କରିଦିଏ ମାଟି,
ଅନ୍ନ ଉପୁଜାଏ ଆନନ୍ଦ ମନରେ ଥକେନାହିଁ ଏତେ ଖଟି ।

ଟ୍ରାକ୍ଟର ଆସିଲା ଆମ କାମ କଲା ତଥାପି ବିଶ୍ରାମ ନାହିଁ,
ଚାଷୀ ପରିବାର ପୂଜାକରେ ମୋତେ ସିନ୍ଦୂର ଚନ୍ଦନ ଦେଇ ।



# ଜାଲ



ଓଡ଼ିଶାର ଲୋକେ ବଡ଼ମାଛ ପ୍ରିୟ୍ ମାଛକୁ ଧରନ୍ତି ଯାଇ,
ବନସୀରେ କିଏ କେଡ଼େ କଉଶଳେ ମାଛକୁ ନିଏ ଉଠେଇ ।
ଖେପାଜାଲ ପୁଣି ମୁଣ୍ଡୁଳି ଜାଲରେ ଛୋଟବଡ଼ ଧରାହୁଏ,
ଶେଉଳ ବାଳିଆ ମାଗୁର କଉକୁ ପୋଳୁହରେ ଧରାଯାଏ ।
କରାଣ୍ଡି ଗଡ଼ିଶା ଦଣ୍ଡିକିରୀ ଆଉ ଚିଙ୍ଗୁଡ଼ି ଧରିବା ପାଇଁ,
ମୁଗୁରା ଲଞ୍ଜାକୁ ହିଡ଼ରେ ବସାନ୍ତି ପଛପଟ ବାନ୍ଧିଦେଇ ।
ଧୀରପାଣି ବାଟ ଦେଖି ବସାଇଲେ ଅନ୍ଧୁଣିକୁ ହିଡ଼ତଳେ,
ଅନ୍ଧୁଣିର ଅନ୍ଧଗଳି ବାଟଦେଇ ମାଛ ଯିବେ ବଳେବଳେ ।
ମୁଗୁରା ଅନ୍ଧୁଣି ଯନ୍ତା ମାଛପାଇଁ ବାହାରି ପାରନ୍ତି ନାହିଁ,
ସବୁ ଛୋଟମାଛ ଧରା ପଡ଼ିଥିବେ ସକାଳୁ ଦେଖିଲେ ଯାଇ ।
ଖତ ବଦଳରେ ସାରଦେଇ ଲୋକେ ବିଲରେ କରନ୍ତି ଚାଷ,
ନାନା ଜାତି ମାଛ ହଜିଗଲେ ଆଜି ଖାଇ ଆଧୁନିକ ବିଷ ।
ଛୋଟମାଛ ପାଇଁ ଗାଆଁରେ ବିଲରେ ନାହିଁ ତ ଗାଡ଼ିଆ ଖାଲ,
ହଜିଗଲା ଯେତେ ମୁଗୁରା ଅନ୍ଧୁଣି ପୋଳୁହ ବନସୀ ଜାଲ ।
ବିଲରେ ଖାଲରେ ପୋଖରୀ ନାଳରେ ନାହାନ୍ତି ସେ ମାଛ ଆଉ,
ଖାଇବାକୁ ସିନା ଅନେକ ମଣିଷ ମାଛ ଧରାହେବ କାହୁଁ ?







# ବଟୁଆ

ଦିନ ଥିଲା ମୁହିଁ ଥିଲି ଗଣ୍ଠିଧନ ସଭିଙ୍କର ପ୍ରିୟ ସାଥୀ,
କେତେ ରଙ୍ଗ ରୂପ ଥିଲା ପୁଣି ମୋର ହସୁଥିଲି ଦିନରାତି ।

କିଏ ରଖେ ଟଙ୍କା କିଏ ରଖେ ସୁନା କିଏ ରଖୁଥିଲା ନଥି,
ରସିକିଆ ଲୋକ ପାନ ସଜ ରଖେ ବଇଦ ରଖଇ ପଥି ।

ଚମଡ଼ା ହେଉକି କପଡ଼ାରେ ହେଉ ମଖମଲି କନା ହେଉ,
କମକୋଟୀ କାମ ମୋ ଉପରେ ଥାଏ ଜଳୁଥାଏ ଦାଉଦାଉ ।

ଅଣ୍ଟାରେ ଝୁଲାଇ ବଜାରକୁ ଯାଏ ଧନୀକ ବଣିକ ଭାଇ,
ନାବିକ ନାଆରେ ବାନ୍ଧି ଦେଇଥାଏ ଖୁଚୁରା ପଇସା ଥୋଇ ।

ମହାଜନ ମୋତେ ଅତି ଯତନରେ ରଖିଥାଏ ତା' ପେଡ଼ିରେ,
ଘରଣୀ ସିନ୍ଦୁକ ତାଲା ପଡ଼ିଥାଏ ମୁହିଁ ଥାଏ ତା' ଭିତରେ ।

ଅତିଥି ଆସିଲେ ମୋତେ ଖୋଜା ପଡ଼େ ଭଙ୍ଗାଯିବ ଖିଲିପାନ,
ଅଜାଙ୍କ ଅଣ୍ଟିରେ ଲୁଚି ରହିଥାଏ ହୋଇ ତାଙ୍କ ଗୁପ୍ତଧନ ।

ଭେନିଟି ଆସିଲା, ଆଟାଚି ଧରିଲେ ମୋତେ ଏବେ ଭୁଲିଗଲେ,
ପୁରୁଣା କାଳର ବଟୁଆକୁ ଆଉ କିଏ ପଚାରୁଛି ଭଲେ ?



ଓଡ଼ିଆ ଚଳଣି
ଓଡ଼ିଆ ଖାଦ୍ୟ

# ଚଉଁରା



ଓଡ଼ିଆ ଘରଣୀ ଅତି ଯତନରେ ତୁଳସୀ ଚଉଁରା ପୂଜେ,
ସବୁ ମନ୍ଦିରରେ ଥାଏ ମୂର୍ତ୍ତି ପୁଣି ଥାଏ ସବୁ ଶୁଭକାର୍ଯ୍ୟେ ।

ଧନୀ କି ଗରିବ ସଭିଏଁ ଜାଣନ୍ତି ତାଙ୍କରି ଆରାଧ୍ୟ ମୂର୍ତ୍ତି,
ଘରୁ ବାହାରିଲେ ଶୁଭହେବ ବୋଲି ଯାଆନ୍ତି ମୋ ମୁଖ ଚାହିଁ ।

ଲିପାପୋଛା ହୁଏ ଗୋବର ପାଣିରେ ସଫା ସୁତୁରା ମୋ ଜାଗା,
କୁଆଁର ପୂନେଇଁ ଚାନ୍ଦ ପୂଜାପାଇଁ କଇଁଫୁଲ ହୁଏ ସଜା ।

ଘରର ଘରଣୀ ଗାଧୋଇ ପାଧୋଇ ମୋ ଉପରେ ଢାଳେ ପାଣି,
ସବୁ ପରବରେ ଫୁଲ ଚନ୍ଦନରେ ସଂଧ୍ୟା ଧୂପଦିଏ ଆଣି ।

ସତୀ ତୁଳସୀଙ୍କୁ ପ୍ରଭୁ ନାରାୟଣ ଧରିଛନ୍ତି ମଥାପରେ,
ଏଇ ବିଶ୍ୱାସରେ ପୂଜନ୍ତି ସକଳେ ପ୍ରଣମନ୍ତି ଭକ୍ତିଭରେ ।

ମୋ ତୁଳସୀପତ୍ର ଆହା କି ପବିତ୍ର ଜଗନ୍ନାଥଙ୍କର ପ୍ରିୟ,
ମନନେଇ ଫଳ ପାଇବ ନିଶ୍ଚୟ ହୁଳହୁଳିଟିଏ ଦିଅ ।



     



# ଭାଗବତ ଟୁଙ୍ଗୀ

ଗାଆଁର ମଝିରେ ଠାକୁରାଣୀ ପାଶେ ଛୋଟିଆ ଚାଳିଆ ଘର,
ସେଇ ଚାଳିଆରେ ଭାଗବତ ବସେ ମିଛୁଆଙ୍କୁ ଲାଗେ ଡର ।

ପ୍ରତ୍ୟେକ ସନ୍ଧ୍ୟାରେ ଗାଆଁଲୋକ ବସି ଶୁଣନ୍ତି ପୁରାଣ କଥା,
ଭାଗବତ ପଢି ବୁଝାନ୍ତି ପଣ୍ଡିତେ ଶ୍ରୀକୃଷ୍ଣ ଚରିତ ଗାଥା ।

କେବେ ପୁଣି ଚାଲେ ପ୍ରବଚନ ପର୍ବ ପାଠହୁଏ ରାମାୟଣ,
ମହାଭାରତର ଚର୍ଚ୍ଚାହୁଏ ପୁଣି ଚାଲେ ଗୀତା ପାରାୟଣ ।

ପୁରାଣ କାହାଣୀ ଶୁଣିଶୁଣି ଲୋକେ ମନକୁ କରନ୍ତି ବୋଧ,
ନିଜଦୁଃଖ ଭୁଲି ଯାଆନ୍ତି ସେଇଠି କମିଯାଏ ଅପରାଧ ।

ଭାଗବତ ଘରେ ଭୋଜି ଭାତ ହେଲେ କରନ୍ତି ପଂକ୍ତି ଭୋଜନ,
ପର ଆପଣାର ଭେଦଭାବ ଭୁଲି ଭାବନ୍ତି ସବୁ ସମାନ ।

ଗାଆଁର ନିଶାପ ଭଲମନ୍ଦ କଥା ସେଇଠି ବିଚାର ହୁଏ,
ପଞ୍ଚାୟତ ବସେ ସଭିଙ୍କ ଆଗରେ ଦୋଷୀ ଦୋଷ ମାନିଯାଏ ।

ଏବେ ତ ଗଲାଣି ଭାଗବତ ଟୁଙ୍ଗୀ ବସିଛି ଯୁବକ ସଂଘ,
କିଏ ବା କାହାକୁ ମାନୁଛି ଗାଆଁରେ ସବୁ ଜଣେ ଜଣେ ବାଘ ।







# ବେଙ୍ଗଳା

ଉଚ୍ଚଜାଗା ଦେଖି ଲିପା ପୋଛାକରି ଖଳାକରେ ଚାଷୀଭାଇ,
ଖଳାର ମଝିରେ ଖୁଣ୍ଟ ପୋତିଦିଏ ମେରି ବୋଲି ନାମଦେଇ।

ମେରିଖୁଣ୍ଟ ଚାରିପଟେ ବିଞ୍ଚିଦିଏ ଧାନ ନାନାଜାତି ଶସ୍ୟ ଡାଲି,
ଶୁଖେଇ ଫସଲ ରଖିଥାଏ କାଟି ବେଙ୍ଗଳା ପଡ଼ିବ ବୋଲି।

ମେରିଆ ବଳଦ ଖୁଣ୍ଟମୂଳେ ଥାଏ ଚାଲେ ସିଏ ଧୀରେ ଧୀରେ,
ଚଞ୍ଚଳିଆ ଯିଏ ଧାଡ଼ିର ଶେଷରେ ମେରି ଚାରିପଟେ ଘୂରେ।

ପାଞ୍ଚ ଛଅ ସାତ ବଳଦ ଚାଲିଲେ ଶସ୍ୟ ଝରିପଡ଼େ ତଳେ,
ପାଳ କୁଟା ନଡ଼ା ବୋଡିକୁ ହଟାଇ ଚାଷୀ ଆନନ୍ଦରେ ତୋଳେ।

ଖଳା ବେଙ୍ଗଳାରେ ଫସଲ ଅମଳ ବଳଦଙ୍କ ଧାଡ଼ିଚାଲି,
ଦେଖିବା ଲୋକର ପେଟ ପୂରିଯାଏ ଖଳା ହୋଇଯାଏ ଖାଲି।

ଖଳା କାମ ସରେ କ୍ଷୀରି ଭୋଗ ବାଢେ ଲକ୍ଷ୍ମୀ ଠାକୁରାଣୀ ପାଇଁ,
ମେରୁ ପୂଜାକରି ଉପାଡ଼େ ଆନନ୍ଦେ ଆରବରଷକୁ ଚାହିଁ।







# ପଖାଳ

ଗରମ ଦିନରେ ଓଡ଼ିଆ ପଖାଳ ବଡ଼ ସୁଆଦିଆ ଲାଗେ,
ଶାଗ ଖରଡ଼ାକୁ ବଡ଼ିଚୂରା ଥିଲେ ଆହୁରି କଂସାଏ ମାଗେ ।

ପୋଡ଼ା ବାଇଗଣ ଭର୍ତ୍ତା ହେଇଥିବ କଞ୍ଚାଲଙ୍କା ଦଳାହେଇ,
ରସୁଣ ପାଖୁଡ଼େ ମିଶିଥିବ ଯଦି ପଖାଳ କରିବ ବାଇ ।

ଦହିମିଶା ହେଲେ ସଜ ପଖାଳରେ ପିଆଜ ଦି'ଖଣ୍ଡ ଦେବ,
ଶୁଖୁଆ ଭଜାକୁ ଖୋଜିବ ପଖାଳ ଯଦି ବାସି ହେଇଥିବ ।

ଶୀତଦିନେ ଘର ଅଗଣାରେ ବସି ଖରାରେ ପଖାଳ ଖାଅ,
ପଖାଳ ତୋରାଣି ପେଟେ ପିଇଦେଇ ଭୋକ ଶୋଷ ଭୁଲିଯାଅ ।







# ମଣ୍ଡାପିଠା

ପାଣି ସରସର ଭିତରେ କୋରୁଅ
ଦିଶେ ରସଗୋଲା ପରି,
ମଣ୍ଡାପିଠା ମୂହିଁ ଖାଇଲେ ଜାଣିବ
ଘରଣୀର ବାହାଦୁରୀ ।

ଓଦା ଚାଉଳର ଗୁଣ୍ଡ ଜନ୍ତାହେଲେ
ସେଥିରୁ ବାହାରେ ଖଳି,
ସେହି ଖଳିନେଇ ଛୋଟପେଣ୍ଡୁ ପରି
ଘରଣୀ ଗଡନ୍ତି ଦଳି ।

ନଡ଼ିଆ କୋରାକୁ ଗୁଡ଼ପାଗ ଦେଇ
କୋରୁଅ ତିଆରି କରି,
ସେହି ଖଳିପେଣ୍ଡୁ ଗଡିବା ଆଗରୁ
କୋରୁଅ ଦିଅନ୍ତି ଭରି ।

ଫୁଟନ୍ତା ପାଣିରେ ସିଝାଇଲେ ତାକୁ
ହୋଇଯାଏ ଧୋବ ମଣ୍ଡା,
ସେହି ମଣ୍ଡାପିଠା ସୁଆଦ ଲାଗିବ
ହୋଇଗଲେ ଟିକେ ଥଣ୍ଡା ।

କୋରୁଆ ନଥାଇ ଚେପଟା ହୋଇଲେ
ଗଇଁଠା ହୁଏ ମୋ ନାଆଁ,
ସରଳ ମଧୁର ସୁଖାଦ୍ୟ ଭାବରେ
ଗଇଁଠା ଖାଆନ୍ତି ଛୁଆ ।

ଆମ୍ଭ ବଉଳକୁ ନିମନ୍ତ୍ରଣ କରି
ପୂଜନ୍ତି ଅମାବାସ୍ୟାରେ,
ମାଣବସା ଆଉ ସୁଦଶାବ୍ରତରେ
ମଣ୍ଡା ହୁଏ ଘରେଘରେ ।







# ପୋଡ଼ପିଠା

ଓଡ଼ିଆ ଘରର ଅସଲ ପରବ ତିନିଦିନ ହୁଏ ରଜ,
ପୋଡ଼ପିଠା ମଜା ମନେ ପଡ଼ିଯାଏ ହୋଇଗଲେ ସଜବାଜ ।

ବହଳ ପିଠଉ ସହିତ ମିଶାଇ ମସଲା ନଡ଼ିଆ ଗୁଡ଼,
କଦଳିପତ୍ରରେ ସଜାଇ ଉପରେ ରଖାଯାଏ ନିଆଁରଡ଼ ।

ଚୁଲି ଜଳୁଥିବ ଦିକିଦିକି ହୋଇ ତାତିବ ପଲମ ତଳ,
ସିଝିଯିବି ମୁହିଁ ସାରାରାତି ରହି ପିଠା ହୋଇବ ପାକଳ ।

ପୋଡ଼ା ପତରକୁ ଧୀରେ ଧୀରେ କାଢି ଖଣ୍ଡଖଣ୍ଡ କଟାହୁଏ,
ଥାଳିରେ ସଜେଇ ରଖିଦେଲେ ମୋତେ ବାସ ମହକାଇ ଦିଏ ।

ଅତିଥି ଆସିଲେ ଝିଅ ବୁଲିଗଲେ ଖାଆନ୍ତି ଆନନ୍ଦ ମନେ,
ପିଠାରଜା ମୁହିଁ ରହିଥାଏ ଚାହିଁ ଆଉ କିଏ ଆସୁ ଜଣେ ।







# କାଞ୍ଜି

ଓଡ଼ିଆ ଘରର କାଞ୍ଜିପାଣି ସ୍ୱାଦ ପାଟିରୁ ଛାଡ଼ିବ ନାହିଁ,
ସୋରିଷ ତେଲରେ ଛୁଙ୍କ ହେଇଥିଲେ ମହମହ ବାସୁଥାଇ ।

ବାସି ପଖାଳର ଖଟା ତୋରାଣିକୁ ରଖିବ ଯତନ କରି,
ମୂଳା, ଲାଉ ଆଉ କଖାରୁ ସହିତ ଯାହା ଅଛି ଦିଅ ଡାଳି ।

ବହଳ କରିବ ଚାଉଳ ଗୁଣ୍ଡକୁ ମିଶାଇବ ଧୀରେ ଧୀରେ,
ଫୁଟାଇବ ତାକୁ ସିଝାଇବା ପାଇଁ ବସିଥିବ ଆଞ୍ଚପରେ ।

ଲଙ୍କା ଜିରା ପଞ୍ଚଫୁଟଣ ପକାଇ ଛୁଙ୍କଦେବ ତେଲଦେଇ,
ଭୃଷଙ୍ଗ ପତ୍ରକୁ ଦେଇଥିବ ଟିକେ ବାସନା ହୋଇବା ପାଇଁ ।

ଦହିକଡ଼ି ଭାଇ କାଞ୍ଜିପାଣି ମୁହିଁ ଗରିବ ଘରର ସାଥୀ,
ଭାତଥାଳି ପାଶେ ଗିନାଏ ଥୋଇଲେ ଲୋଡ଼ାନାହିଁ ସାଗୁଆତି ।

ମୋତେ କେ ଆଦର କରୁ ବା ନକରୁ ଜଗନ୍ନାଥଙ୍କର ପ୍ରିୟ,
କାଞ୍ଜିକୁ ନେଇ ଯେ କେତେକଥା ଅଛି ଟିକିଏ ମନେ ପକାଅ ।







**ଡକ୍ଟର କୃତ୍ତିବାସ ନାୟକ**
ଜନ୍ମ : ୦୨.୦୩.୧୯୫୫
ଗ୍ରାମ : ଏକତଲା, ରାଜକନିକା, କେନ୍ଦ୍ରାପଡ଼ା

ଡକ୍ଟର କୃତ୍ତିବାସ ନାୟକ ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚଳାଇ ସେ ପ୍ରତ୍ୟେକ କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି । ୧୯୮୩ ମସିହାରୁ ସେ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର । ବାଲିମେଳା, ଜୟପୁରରୁ ପ୍ରକାଶିତ ଶିଶୁପତ୍ରିକା 'ଶିଶୁ ନୟନ', 'ଆମେ ଶିଶୁ' ଓ 'ଶିଶୁ ରାଇଜ'ର ସେ ଥିଲେ ସଫଳ ସଂପାଦକ । ଶିଶୁ ସାହତ୍ୟ ପାଇଁ ସେ ୧୯୯୨ ଓ ୧୯୯୯ ମସିହାରେ ଜାତୀୟ ଶିଶୁ ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି । ତାଙ୍କର ଉପନ୍ୟାସ 'ଶୁଭଲକ୍ଷ୍ମୀ'ର ହିନ୍ଦୀ ସଂସ୍କରଣ ପାଇଁ ସେ ୨୦୦୨ ବର୍ଷର ଜାତୀୟ ପୁରସ୍କାରରେ ପୁରସ୍କୃତ ହୋଇଛନ୍ତି । ଜ୍ଞାନ ସଂଗ୍ରହ, ଉତ୍କଳ ଦର୍ପଣ, ଢେଙ୍କାନାଳ ଦର୍ପଣ, ଆଜିର କୋରାପୁଟ, କେନ୍ଦୁଝର ଦର୍ପଣ, ସମ୍ବଲପୁର ପ୍ରତିଭା ଓ ରାଉରକେଲା ଦର୍ପଣ ପ୍ରଭୃତି ସୂଚନା ସାହିତ୍ୟ ସମେତ ତାଙ୍କର 'କୁଳବୋହୂ' ଓ 'ହସକୁରୀ ଜହ୍ନ' ଉପନ୍ୟାସ ଏବଂ ସାତଖଣ୍ଡ ଗୀତି କବିତା ପୁସ୍ତକ ପ୍ରକାଶ ପାଇ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି । ଅଦ୍ୟାପି ତାଙ୍କର ୧୬୫ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଓ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ହୋଇଛନ୍ତି । ଉତ୍କଳ ସାହିତ୍ୟ ସମାଜ ତରଫରୁ ୨୦୧୩ ମସିହାରେ ସେ ଶ୍ରେଷ୍ଠ ଶିଶୁ ସାହିତ୍ୟିକ ଭାବେ ପୁରସ୍କୃତ ହୋଇଛନ୍ତି । ୨୦୧୪ ମସିହାରେ ସେ କେନ୍ଦ୍ରାପଡ଼ା ଜିଲ୍ଲା ସାହିତ୍ୟ ପରିଷଦ ଦ୍ୱାରା କେନ୍ଦ୍ରାପଡ଼ା ଗୌରବ ସମ୍ମାନ ଲାଭ କରିଛନ୍ତି । ସଂପ୍ରତି ଆକାଶବାଣୀ, ଜୟପୁର କେନ୍ଦ୍ରର କେନ୍ଦ୍ର ନିର୍ଦ୍ଦେଶକ ପଦବୀରୁ ଅବସର ଗ୍ରହଣ କରିଛନ୍ତି ।

-ପ୍ରକାଶକ


ISBN 93-87968-28-6